ISSN: 2456-9194, Vol. II, Issue. IV, March 2019

ପ୍ରତ୍ୟୟ
(Journal of Odia Language, Culture and Science)
JournalHomepage:http://cphfs.in/research.php



# ଉତ୍କଳ ଅରଣ୍ୟେ ଅନ୍ନପୂର୍ଣ୍ଣା ଦେବୀ

**ସଂଘମିତ୍ରା ବେହେରା**
ଅଧ୍ୟାପିକା, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ
Email: sanghamitraoriya@gmail.com

***ସାରମର୍ମ :*** *ବିଂଶ ଶତାବ୍ଦୀର ନାରୀ ଲେଖିକାମାନଙ୍କ ଅବଦାନ ଓଡ଼ିଆ ସାହିତ୍ୟପାଇଁ ନିଶ୍ଚିତ ଶୁଭଙ୍କର ବାର୍ତ୍ତା । ଏହି ସମୟରେ ନାରୀ ଲେଖିକାମାନଙ୍କ ରଚନାରେ ବ୍ୟକ୍ତିଗତ ଅବସାଦ, ବିଭୁବୋଧ, ସଂସ୍କାରବାର୍ତ୍ତା, ପ୍ରକୃତିପ୍ରୀତି, ଜାତିପ୍ରୀତି ପ୍ରକାଶ ପାଇଛି । ନାରୀ ଲେଖିକାମାନେ ପତ୍ରପତ୍ରିକାର ସଂପାଦନା, ପ୍ରତିଷ୍ଠା ଦାୟିତ୍ୱ ସହ ତତ୍କାଳୀନ ସମାଜରେ ନାରୀ ସଂଗଠନ ପ୍ରତିଷ୍ଠାରେ ଭୂମିକା ଗ୍ରହଣ କରିଛନ୍ତି । ସରଳାଦେବୀ, ମାଳତୀ ଚୌଧୁରୀ, ରେବା ରାୟ ପ୍ରମୁଖ ନାରୀଲେଖିକାଙ୍କ ଭଳି ଅନ୍ନପୂର୍ଣ୍ଣା ଦେବୀ ଉତ୍କଳ ଅରଣ୍ୟରେ ସରସ୍ୱତୀ ଭାବେ ଉଦୀୟମାନ । ତେବେ ଅନ୍ନପୂର୍ଣ୍ଣା ଦେବୀଙ୍କ ସାହିତ୍ୟସୃଷ୍ଟିକୁ ନେଇ ଏହି ବିଶେଷ ଆଲୋଚନା*

***ପ୍ରମୁଖ ଶବ୍ଦାବଳୀ :*** *ଉତ୍କଳ ଅରଣ୍ୟେ, ସରସ୍ୱତୀ, ଶୁଣଦର୍ପଣ, ଅଲୋଡ଼ା ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ*

ସ୍ୱାଧୀନତା ପୂର୍ବରୁ ଓଡ଼ିଆ ସାହିତ୍ୟରେ ନାରୀକବି ଭାବେ ରେବା ରାୟ (୧୮୭୯-୧୯୫୯), ସୁଲୋଚନା ଦେଈ (୧୮୯୫-୧୯୪୭), ଅପର୍ଣ୍ଣା ଦେବୀ (୧୮୯୯-୧୯୬୨), କୁନ୍ତଳାକୁମାରୀ ସାବତ (୧୯୦୦-୧୯୩୮) ଭଳି ଜଣେ ନାରୀକବି ଭାବେ ଅନ୍ନପୂର୍ଣ୍ଣା ଦେବୀଙ୍କ ପରିଚୟ ଅନନ୍ୟ । ସ୍ମୃତିଲୁପ୍ତ ପତ୍ରପତ୍ରିକାରୁ ଏଭଳି ନାରୀମାନଙ୍କ ରଚନାକୁ ଅନୁସନ୍ଧାନ କରିବା ଏବଂ ସଂକଳନ ଓ ସଂପାଦନ କରିବା ଏବେ ଆଶାତୀତ ହୋଇପଡ଼ିଛି । ନାରୀକବି କୁନ୍ତଳାକୁମାରୀ ସାବତଙ୍କ ବ୍ୟତୀତ ଅନ୍ୟମାନେ ପ୍ରାୟତଃ ଆଲୋଡ଼ା ହୋଇପଡ଼ିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ପରିପ୍ରେକ୍ଷୀରେ ନାରୀକବି ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀଙ୍କୁ ଆଲୋଚନା କରାଯାଇପାରେ । ଏହାଙ୍କର ସମୟସୀମା ୧୮୮୩ରୁ ୧୯୪୮ । ୧୯୭୮ ନଭେମ୍ବର ୨୩ ତାରିଖରେ ଆଲୋଚକ ଡକ୍ଟର କ୍ଷେତ୍ରବାସୀ ନାୟକ 'ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ' ନାମରେ କବିଙ୍କର କବିତାଗୁଡ଼ିକୁ ପତ୍ରପତ୍ରିକା ଓ କବିଙ୍କର ଜ୍ୟେଷ୍ଠକନ୍ୟା ମନୋରମା ପଟ୍ଟନାୟକଙ୍କ ଠାରେ ଥିବା ଅପ୍ରକାଶିତ ଓ ଜୀର୍ଣ୍ଣ ପାଣ୍ଡୁଲିପିକୁ ଉଦ୍ଧାର କରି ଏହାକୁ ସଂପାଦନ କରିଥିଲେ । ସେ ନାରୀକବିଙ୍କ ରଚନାଗୁଡ଼ିକୁ କାବ୍ୟଶ୍ରୀ ବିଭାଗ (କଳ୍ପକୁଞ୍ଜ, ଆଶାହାଟ), ଗୀତିକାବ୍ୟ ଶ୍ରୀବିଭାଗ (୫୯ଟି ଗୀତିକାବ୍ୟ), ମନଶ୍ରୀ ବିଭାଗ (୧୨ଟି ମନ ଶ୍ରେଣୀଭୁକ୍ତ କବିତା), ବିଚ୍ଛେଦ ମିଳନ (୨୪ଟି କବିତା), ବିବିଧ କବିତା ବିଭାଗ (୨୭ଟି କବିତା), ସ୍ୱପ୍ନଶ୍ରୀ ବିଭାଗ:ଗଦ୍ୟ ରଚନା (୯ଟି ଗଦ୍ୟ) ବିଷୟକୁ ଏଥିରେ ସଂକଳନ ଓ ସଂପାଦନ କରି ଅନ୍ତର୍ଭୁକ୍ତ କରିଛନ୍ତି । କବି ଅନ୍ନପୂର୍ଣ୍ଣାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା ବାଢ଼ିଛନ୍ତି 'ଉତ୍କଳବାସୀ' ପତ୍ରିକାରେ ତା.୮.୧୨.୧୯୦୪ ରେ –"ଅନନ୍ୟଶୂନ୍ୟା ଅନ୍ନପୂର୍ଣ୍ଣା ମହିଳା ମଣ୍ଡନା / କବି ନାମେ ମୁହିଁ ତୋତେ କରୁଛି ଗଣନା । □□□ ଭୋଗେ ଦୁଃଖେ ପଡ଼ି ମଧ ସ୍ଥିର କରି ମନ / ସାହିତ୍ୟ ସେବାରେ କଲୁ ଚିତ୍ତ ସମର୍ପଣ ।" ଚନ୍ଦ୍ରମୋହନ ମହାରଣା 'ପ୍ରଜାବନ୍ଧୁ' ପତ୍ରିକାରେ ଏହି ନାରୀ କବିଙ୍କର ମଧ ଗୁଣଗାନ କରିଛନ୍ତି –"ମନର ମାଳତୀ ଫୁଟି ବିଜନ ବନରେ / ମର୍ତ୍ତ୍ୟଲୀଳା ସାଙ୍ଗକରେ ବିଧିବିଧାନରେ / ମାନବ ମଧରେ ଥାଏ ମନର ମାଳତୀ / ଉତ୍କଳ ଅରଣ୍ୟେ ଅନ୍ନପୂର୍ଣ୍ଣା ସରସ୍ୱତୀ ।"(୧) (ପ୍ରଜାବନ୍ଧୁ – ତା.୧୫.୦୨. ୧୯୦୫)

କବି ଅନ୍ନପୂର୍ଣ୍ଣା ଦେବୀ ଚିକିଟି ରାଜଧାନୀର କରଣ କୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଥିଲେ ଗୋବିନ୍ଦ ପଟ୍ଟନାୟକ ଓ ମାତା ସୁଭଦ୍ରା ଦେବୀ । ପିତା ଚିକିଟି ତାଲୁକର କଳବାଡ଼ ଗ୍ରାମରେ ସରବରାକାର ଥିଲେ ଏବଂ ତାଙ୍କ ବଡ଼ବାପା ଗୌରଚନ୍ଦ୍ର ଚିକିଟ ରାଜାଙ୍କର ଶିକ୍ଷାଗୁରୁ ଥିଲେ । ସେ ନିଜ ଗୃହରେ ପାଠଶାଳା ଖୋଲିଥିବାରୁ ସେହିଠାରେ କବିଙ୍କର ବାଲ୍ୟଶିକ୍ଷା ପ୍ରାପ୍ତି ହୋଇଥିଲେ । ଏହା ସତ୍ତ୍ୱେ ମହାଭାରତ, ରାମାୟଣ, ଭାଗବତ ଓ ଚୈତନ୍ୟ ଚରିତାମୃତ ଆଦି ପାଠ କରିବାର ସୁଯୋଗ ପାଇଥିଲେ । ତତ୍କାଳୀନ ସମାଜର କୁସଂସ୍କାର ତାଙ୍କର ପୋଥିରେ ଡୋରି ବାନ୍ଧିଦେଲା, ମାତ୍ର ସାହିତ୍ୟ ପ୍ରୀତିରେ ତଲ୍ଲୀନ କବିଙ୍କର ଭାବକୁ ନୀରବ କରିପାରିନଥିଲା । ତାଙ୍କ ରଚନାରୁ ଏକ ଭାବାତ୍ମକ କାବ୍ୟ 'କଳ୍ପକୁଞ୍ଜ' ଜନ୍ମ ନେଇଥିଲା । କାବ୍ୟର ଗୋଟିଏ ଦୁଇଟି ପଂକ୍ତିରେ ସେ ନିଜର ପ୍ରତିଭା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ବିବିଧ

ସମସ୍ୟା ଓ ଯନ୍ତ୍ରଣା ଜୀବନ ସତ୍ତ୍ୱେ ସାହିତ୍ୟ ହିଁ ଥିଲା ତାଙ୍କର ତୃଷ୍ଣା । ଏହାକୁ ପାନ କରିବାର ଆନନ୍ଦକୁ ସେ ପ୍ରତି ମୁହୂର୍ତ୍ତରେ ଅଙ୍ଗେ ନିଭେଇଛନ୍ତି ଯେପରି – "ସର୍ବବିଦ୍ୟା ମଧ୍ୟେ ସାହିତ୍ୟ ସମ୍ବନ୍ଧେ / ସର୍ବଦା ଥିଲା ଭାବନା / ବିଳମ୍ବିତା ପ୍ରତି / ତିଳେ ନାହିଁ ମତି / ଭାବିନିଅନ୍ତି କଳ୍ପନା ।" (କଳ୍ପକୁଞ୍ଜ, ପୃ.୫) କାବ୍ୟ ରଚନା କାଳରେ କବି ଫକୀରମୋହନ ସେନାପତିଙ୍କ ଦ୍ୱାରା ସେ ଗଭୀର ପ୍ରୋତ୍ସାହିତ ହୋଇଥିଲେ । ସାହିତ୍ୟ ପ୍ରୀତିକୁ କାବ୍ୟନାୟକଠାରେ କବି ଯେପରି ଉଲ୍ଲେଖ କରିଛନ୍ତି ସେହିପରି କାବ୍ୟ ନାୟିକାଠାରେ ମଧ୍ୟ ଉଲ୍ଲେଖ କରିଛନ୍ତି –"ଉଚ୍ଚମନ ଉଚ୍ଚଭାବ ଉଚ୍ଚ ଅଭିଳାଷ / ସାହିତ୍ୟ ଆଭାଷ ଶୁଣେ ସଂପୂର୍ଣ୍ଣ ସାହାସ / ଝରଇ ମାଧୁରୀ ରସ କବିତା ଚାତୁରୀ / ମାତୃଭାଷା ଦେଶଦେବା ପଦେ ପଦେ ପୂରି ।" (ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ, ପୃ.୨୩) କାବ୍ୟକବିତା ରାଚନରେ ଜୀବନକୁ ଚିହ୍ନିବା ଓ ଚିହ୍ନେଇବାରେ କବି ଜଣେ ଧୂରୀଣସ୍ରଷ୍ଟା । ତେଣୁ ନିଜର ଚଲାପଥରେ ଯାହା ପାଇଛନ୍ତି, ଯାହା ହରେଇଛନ୍ତି, ଯାହା ଅନୁଭବ କରିଛନ୍ତି ସେହି ତିକ୍ତତା ଓ ମଧୁରତା ସମ୍ମିଶ୍ରଣ ହୋଇଛି ତାଙ୍କ କବିତାର ଭାଷ୍ୟ ।

ସତରବର୍ଷ ବୟସରେ ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁର ନିବାସୀ ରାମଚନ୍ଦ୍ର ପଟ୍ଟନାୟକଙ୍କୁ ସେ ବିବାହ କରିଥିଲେ । ମାତ୍ର ଚିକିଟୀ ଓ ବଡ଼ଖେମୁଣ୍ଡି ମଧ୍ୟରେ ଶତ୍ରୁତା ପାଇଁ ସପତ୍ନୀଙ୍କ ରାଜରୋଷର ଶିକାର ହୋଇଥିଲେ । ରାଜ ଋଣ ପରିଶୋଧକୁ ନେଇ ଏଭଳି ତିକ୍ତତା ସୃଷ୍ଟି ହୋଇଥିଲା ଯେ ସପରିବାର ଦିଗପହଣ୍ଡିକୁ ଯିବାପରେ ମଧ୍ୟ ଉକ୍ତ ପ୍ରସଙ୍ଗ ଗଞ୍ଜାମର 'ଗୁଣଦର୍ପଣ' ଓ ସମ୍ବଲପୁର ହିତୈଷିଣୀ ରାଜା କୃପାମୟ ଦେବ ଅନ୍ନପୂର୍ଣ୍ଣାଙ୍କ ନାମରେ ମିଥ୍ୟା ରଚନା କରିଥିଲେ । ସେ ସମୟରେ ଏହି ନାରୀକବି ନିଜର କବିତା ଦ୍ୱାରା ଜଣାଶୁଣା ହୋଇସାରିଥିଲେ, ମାତ୍ର ଯେପରି କୌଣସି ରାଜ ଆଶ୍ରୟ ନପାନ୍ତି ଏବଂ ସମାଜରେ ଅନାଦର ପ୍ରତିଷ୍ଠା ଓ ପ୍ରସାର ପାଇଁ ରାଜାଙ୍କର କୁମନ୍ତ୍ରଣାର ବଳିଷ୍ଠ ଜବାବ ନାରୀକବି ମଧ୍ୟ ପତ୍ର ଦ୍ୱାରା ପ୍ରେରଣ କରିଥିଲେ । ଏହି ପତ୍ର ଅନ୍ତେ ରାଜା ତାଙ୍କର ସ୍ୱାମୀଙ୍କୁ ସ୍ଥାନ ଛାଡ଼ିବା ନିମନ୍ତେ ନୋଟିସ୍ ପ୍ରଦାନ କରିଥିଲେ । ନାରୀକବିଙ୍କ ରାଜାଙ୍କୁ ପ୍ରେରିତ ପତ୍ର 'ନିବେଦନ' ସେ ସମୟରେ 'ମନୋରମା', 'ପ୍ରଜାବନ୍ଧୁ' ଓ 'ଉତ୍କଳବାସୀ' ସମ୍ବାଦ ପତ୍ରରେ ପ୍ରକାଶ ପାଇଥିଲା –

"ଅଛି କି ହେ ସୁସନ୍ତାନେ ଉତ୍କଳ ମାତାର
ଚିହ୍ନିବାକୁ ଭଗିନୀର ହୃଦୟ ଭଣ୍ଡାର ।
ଜାଣିଶୁଣି ପଛଘୁଞ୍ଚା ଦେଉଛ କି ପାଇଁ
ଅଭିମାନ ରଖିବାକୁ ସାହାସ କି ନାହିଁ?

× × ×
× × ×

କୁହୁକ-ମାୟା-ମନ୍ତ୍ରର ପ୍ରବନ୍ଧ ଆକାରେ
ପ୍ରକାଶିତ ପତ୍ରିକାରେ ମୋର ବିଷୟରେ ।
ଦେଖି କେହି ବିଶ୍ୱାସକୁ ଯିବନାହିଁ ଭାଇ
ଯଥା ତଥା ଅବସ୍ଥାର ସୀମା ଆଉ ନାହିଁ ।

× × ×
× × ×

ଭ୍ରମବଶେ ପଦ୍ୟାକାରେ ମାନରକ୍ଷା ପାଇଁ
ଗଞ୍ଜଣା ଲାଞ୍ଛନା ସହି ଲେଖୁଛି ବୁଝାଇ ।"

(ନିବେଦନ-୨)

(ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ, ପୃ.୩୮୧-୩୮୪)

ଏହି ସମୟରେ ସହପରିବାର ବ୍ରହ୍ମପୁରକୁ ଚାଲିଆସିଥିଲେ ଏବଂ ସେଠାରେ ସାହିତ୍ୟିକମାନଙ୍କ ସହିତ ମିଶିବା ଓ ସାହିତ୍ୟ ରଚନା କରିବାର ଏକ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା । କବିଙ୍କର ଏକ ପଂକ୍ତିରୁ ତତ୍କାଳୀନ ସମାଜ ତାଙ୍କୁ କିଭଳି ଅଣଦେଖା କରିଛି ତା'ର ସ୍ପଷ୍ଟ ଚିତ୍ର ପ୍ରତିଫଳିତ ହୋଇଛି । କିନ୍ତୁ ଭବିଷ୍ୟତରେ ଜଗତ ଜଣେ ନାରୀର ମହତ୍, ସତ୍ୟ ଓ ଦୃଢ ପଦକ୍ଷେପ ପାଇଁ ସ୍ୱାଗତ କରିବ ଏହାକୁ ସେ ଆକୁଣ୍ଠ ଚିତ୍ତରେ ସ୍ୱୀକାର କରିଛନ୍ତି – "କେତେକେତେ ମହାକବି ଜୀବନ କ୍ଷେତ୍ରରେ / ଭୋଗିଛନ୍ତି ନାନାକଷ୍ଟ ଅଛି ସ୍ୱର୍ଣ୍ଣାକ୍ଷରେ । ଜୀବିତ କାଳରେ ତାଙ୍କୁ କିଏ ପଚାରିଛି? / ମୃତ୍ୟୁ ଅନ୍ତେ କିଏ ଅବା ତାଙ୍କୁ ନ ଝୁରିଛି ।" ତଥାପି ଆଶାବାଦୀ କବି ଆଶାତୀତରେ ଆଶାୟିତ – "ତେଣୁ ଆଶାପଥେ ଦେଲି ମୁହିଁ ଜଳାଞ୍ଜଳି / ବିଭୁପଦେ ଚିତ୍ତ ଦେଇ କରୁଅଛି ଅଳି ।" (ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ, ପୃ.୩୮୫) କବି ନିଜର ଅଭିଳାଷ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି ସମଗ୍ର ଉତ୍କଳ ଭ୍ରମଣ କରି ସେ ନିଜର କବିତା ରଚନା କରିଥାନ୍ତେ ଏବଂ ଜାତିଭେଦ କୁସଂସ୍କାରକୁ ସମାଜରୁ ଦୂରେଇବା ସହିତ ଜନସାଧାରଣଙ୍କ ସମ୍ବନ୍ଧରେ ନିଜ ପଦ୍ୟରେ ରଚନା କରିଥାନ୍ତେ।

ନାରୀକବିଙ୍କର ଅନ୍ୟ ଏକ ଆଲେଖ୍ୟ 'ଆଶାହାଟ' (୧୯୩୫) । ଏହା ଏକ ଖଣ୍ଡକାବ୍ୟ । ଏହି ଖଣ୍ଡକାବ୍ୟରେ କବିଙ୍କର ଆଶାଚିତ୍ତ ଓ ବୋଧିଚିତ୍ତ ମଧ୍ୟରେ ଦ୍ୱନ୍ଦ୍ୱ ସଂଘାତ ଘଟିଥିବା ଭଳି ମନେହୁଏ । ଜଗତବାସୀ ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟରେ ବାଶୀଭୂତ ହୋଇ 'ପ୍ରାପ୍ତି'ରେ ହିଁ ନିମଗ୍ନ ହୋଇଥାନ୍ତି । ଏହାଦ୍ୱାରା ଦୁଃଖକୁ ହିଂସାର ହୁଏ । ଆଶାଚିତ୍ତଟି ସଂସାରର ଇଙ୍ଗିତରେ ପରିଚାଳିତ ହୋଇ କାମନା ବାସନାରେ ଜର୍ଜରିତ କରେ । ସଂସାରର ଇଙ୍ଗିତରେ ପରିଚାଳିତ ଆଶାଚିଡ଼ର ସ୍ୱରୂପ କବି ନିରୂପଣ କରିଛନ୍ତି - "ଇଙ୍ଗିତେ ଚମକି ଡାକେ ସଖୀ ସଖୀ! / ଆସ ମୋ ଦେଖିବ ହାଟ / ଦେଖି ଏହି ପଥ ଦେଖ ଏହି ରଖ / ଦେଖ ଦେଖ ଏହି ବାଟ । / ଧରି ସଖୀ କର ଚାଲେ ତରତର / ପୁଲକେ ପୁଲକ ଧରି / ପୁଲକ ବାସନା ପୁଲକ କାମନା / ଆପଣାକୁ ଆପେ ବରି ।" (ଆଶାହାଟ, ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ, ପୃ.୭୨) ଅପରଟି ବୋଧିଚିତ୍ତ ଯେ ଆଶାହାଟରେ ନ ହଜି ସଂଯମତାରେ ପରିଚାଳିତ ହୁଏ । ତା'ପାଇଁ ସତ୍ୟ, ଧର୍ମ, କର୍ମ ହେଉଛି ଶ୍ରେୟ । ରହସ୍ୟବାଦରେ ହଜିଯିବା ପାଇଁ ସେ ତାଙ୍କୁ ଆତ୍ମତୃପ୍ତ କରିଦିଏ । ସତେ ଯେପରି ଆଶାହାଟରେ ଦୁଇଟି ଚିନ୍ତନ ବାସକରେ । ଭାଗବତରେ କବି ଜଗନ୍ନାଥ ଦାସ ଯେପରି ଉଲ୍ଲେଖ କରିଛନ୍ତି – "ଏକଇ ବୃକ୍ଷେ ହଂସଦୁଇ / ବସନ୍ତି ପ୍ରିୟ ଭାବ ବହି / ସ୍ୱଭାବେ ବେନି ଶାଖେଥାନ୍ତି / ଏକ ଅରକେ ନ ଦେଖନ୍ତି..." କିନ୍ତୁ ଏଠାରେ ସରସ୍ପର ପରସ୍ପରକୁ ଦେଖିଥାନ୍ତି । ଜଣେ ବାହ୍ୟଜଗତର ଐଶ୍ୱର୍ଯ୍ୟରେ ମୋହିତ ହେବାକୁ ପ୍ରେରଣା ଦେବାବେଳେ ଅପରଟି ଆତ୍ମିକ ଐଶ୍ୱର୍ଯ୍ୟ (ଅନାହତ ବେଣୁନାଦ), ଆତ୍ମିକ ସୌନ୍ଦର୍ଯ୍ୟ (ସତ୍ୟ ଓ ପ୍ରେମ'ରେ ହଜିଯିବା ପାଇଁ ଆହ୍ୱାନ କରେ । ସେଥିପାଇଁ ବୋଧିଚିତ୍ତର ସ୍ୱର ଆଶାଚିତ୍ତକୁ ଦୋହଲାଇ ଦେଇଛି ତା'ର ସ୍ଥିତପ୍ରଜ୍ଞ ବାଣୀରେ – "ଦେଖ ମୋ କୁଟୀର ସୁନ୍ଦରେ ସୁନ୍ଦର / ହରିନିଏ ସର୍ବ ମନ / ସ୍ୱରଗରୁ ବଳି ଅଟେ ସୁଖସ୍ଥଳୀ / ଧରିଛି ଶୋଭା ଭୁବନ ।" ଏହାସତ୍ତ୍ୱେ

କବି ନିଜର ଆତ୍ମିକ ଆବେଦନ ଓ ରୁଚିକୁ ସ୍ୱୀକାର କରିଛନ୍ତି ଏହି ଖଣ୍ଡକାବ୍ୟରେ । ନିଜ ମଧ୍ୟରେ ସ୍ୱଗତୋକ୍ତି କରିବାରେ ସେ ଖୁବ୍ ଆନନ୍ଦ ଅନୁଭବ କରନ୍ତି । ଆତ୍ମବେଦନାକୁ ମନ ସହିତ ସଂଯୋଗ କରି ଜୀବନଚର୍ଯ୍ୟାକୁ ସନ୍ତୁଳନ କରିବାରେ ସେ ଅଭ୍ୟସ୍ତ । ନିଃସଂଗତାରେ ଜୀବନ ବିତାଇବାର ଆନନ୍ଦ ମଧ୍ୟ ସେ ପାଇଛନ୍ତି ବୋଲି ସ୍ୱୀକାର କରିଛନ୍ତି ।" ଏକାକୀ ଏ ବନେ ଏକାକୀ ଜୀବନେ / ସାକ୍ଷୀ ରଖି ମୋର ମନ / ଗୋପନରେ ବସି ଗୋପନରେ ହସି / କଟାଇ ମୋର ଜୀବନ ।" (ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ, ପୃ.୭୮)

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ସନ୍ଥ ଭୀମଭୋଇ ନିଜ ରଚନା (ସ୍ତୁତି ଚିନ୍ତାମଣି)ରେ ସତ୍ୟକୁ ଯେଉଁଭଳି ଉଲ୍ଲେଖ କରିଛନ୍ତି ଏହି ନାରୀକବି ଠିକ୍ ସେହିଭଳି ତାହାକୁ ପରଖିଛନ୍ତି । –"ସତ୍ୟରେ ଫୁଟିବ ସତ୍ୟରେ ଲୁଟିବ / ସତ୍ୟରେ ମଣ୍ଡିବି ଅଙ୍ଗ / ଝଡ଼ିବି ସତ୍ୟରେ ଧରଣୀ ଉପରେ / ଲୋଡ଼ିବି ନାହିଁ କା ସଙ୍ଗ ।" ଜୀବନର ସତ୍ୟତାକୁ ବିରୋଧାଭାସରେ ପ୍ରକାଶ କରିଛନ୍ତି –"ଅପର୍ଣ୍ଣା ସଂପୂର୍ଣ୍ଣ ଏଲୀଳା ବିଧାନ / ଲାଗିଛି ଜୀବନେ ନୀତି ।" ମନର ସ୍ୱରୂପକୁ ଆକଳନ କଲାବେଳେ ସେ କହିଛନ୍ତି ମନ ହେଉଛି କଳ୍ପନାର କାରାଗାର, ସମ୍ରାଟ ଓ କାରବାରର କେନ୍ଦ୍ରସ୍ଥଳୀ ଆଶାହାଟରେ । ତେଣୁ ମନ ଜୀବନକୁ ମରୁମୟ କରିପାରେ ବା ସବୁଜିମା ମଧ୍ୟ କରିପାରେ । ନାରୀକବିଙ୍କ ଜୀବନ ସେଥିରୁ କିଭଳି ବା ବହ୍ମତନ୍ତ୍ର? ତେଣୁ କବିପ୍ରାଣ ଐଶ୍ୱରିକ ଶକ୍ତିଠାରେ ଶରଣ ମାଗିଛି:- ହୃଦୟ ମଣ୍ଡନି ତାପ ବିମୋଚନି! / ରଖ ଚରଣେ ଶରଣ / ଶୂନ୍ୟମନ ଥାଳି ପୂର୍ଣ୍ଣ କର ବାଳି ଭିକ୍ଷାର୍ଥୀ ଅଟେ ଜୀବନ ।"

କବି ବ୍ୟକ୍ତିଗତ ଜୀବନର ଭୂମିକା ସମ୍ପର୍କରେ ସୂଚନା ଦେବାକୁ ଯାଇ ଉଲ୍ଲେଖ କରନ୍ତି ଯେ - ଅଶ୍ରୁ - ଆଘାତ ଓ ନୈରାଶ୍ୟ-ଅନୁତାପ ହେଉଛି ତାଙ୍କ ଜୀବନର ନିତ୍ୟ ସୁଖ । ଏହା ଏକାଧାରାରେ ମଧ୍ୟ ସୁଖର ସ୍ୱପ୍ନ ଓ ବେଦନାର ଅଗ୍ନି । ଉଭୟକୁ ଏକାକାର କରି ଧୈର୍ଯ୍ୟର ମନ୍ଦର ଧରି ସେ ଭାବର ସମୁଦ୍ର ମନ୍ଥନ କରିଛନ୍ତି । ସେଥିରୁ ଯାହା ପାଇଛନ୍ତି ତାହା ହେଉଛି ନିର୍ମଳ କବିତାମୃତ । ଆପଣା ତୁଣ୍ଡରେ ଏହିକଥା ସ୍ୱୀକାର କରି କବି ଲେଖିଛନ୍ତି ଯେ -"ବେଦନାର ଅଗ୍ନି / ଜ୍ୱାଳୁଅଛି ବହ୍ନି / କି ନିରାଶା ଅନୁତାପ / ସହିବା ସାମର୍ଥ୍ୟ । ପାଇଛି ଯଥାର୍ଥ / କରୁଛି ଆଘାତ ମାପ / ତାହା ମୋର ଧନ / ତାହା ହିଁ ଜୀବନ / ତାହା ମୋର ନିତ୍ୟ ସୁଖ / ସେହି ସ୍ୱପ୍ନ ଦେଖି / ଯାଏ ଚିତ୍ର ଲେଖି / ଦୂରକେ କରିବ ଦୁଃଖ ।" (ଅଶ୍ରୁବିନ୍ଦୁ, ପୃ.୨୪୬) ନାରୀକବି ରଚନାଶ୍ରୀ ଅନ୍ନପୂର୍ଣ୍ଣା, ପୃ.୪୦-୪୧

ଏକଦା 'ଚିଲିକା' କାବ୍ୟରେ ରାଧାନାଥ ଦୁଃଖକୁ ତାଙ୍କର ଗୁରୁବୋଲି କହିଥିଲେ । ନାରୀକବିଙ୍କ ଦର୍ଶନରେ ମଧ୍ୟ ଦୁଃଖ ହିଁ ବାସ୍ତବ ଓ ଚିରନ୍ତନ ସତ୍ୟ । ଦୁଃଖ ବିନା ସୁଖର ପରିକଳ୍ପନା ଅସମ୍ଭବ । ଏହା ଆପେକ୍ଷିକ ସତ୍ୟ । ଯେ ଏହି ଦ୍ୱୈତ ଚିନ୍ତାଧାରାକୁ ଅନ୍ତ୍ୟାର୍ଥରେ ଗ୍ରହଣ କରେ ସେ ହିଁ ବାସ୍ତବ ସତ୍ୟର ପୂଜାରୀ । ଏବଂ ସତ୍ ସତ୍ ଆନନ୍ଦର ମନ୍ତ୍ରସ୍ରଷ୍ଟା । ଏଭଳି ସତ୍ୟକୁ କବି ଜାଗତିକ ମଣିଷର ଚିନ୍ତନ ଓ ଭାବଦ୍ରଷ୍ଟା କବିର ଚିନ୍ତନକୁ ଭିନ୍ନ ତରାଜୁରେ ମାପିଛନ୍ତି –"ସୁଖର ପ୍ରଶଂସା / ଜଗତ ଘୋଷୁଛି / ମୋର ପକ୍ଷେ ନାହିଁ କିଛି / ସୁମନ ସୁନ୍ଦର / ଧରଇ କାଳିମା / ସୁଗନ୍ଧ ପାଉଛି ବିଞ୍ଚି ।" (ସୁଖକିସ, ପୃ.୧୪୩) କବିଙ୍କର ଆତ୍ମଦହନ ମଧ୍ୟ ରହସ୍ୟମୟ । କବିତା ଲେଖା ସମ୍ପର୍କରେ ସେ ନିଜସ୍ୱ ସଂଳାପର ଏକ ହସ୍ତଲିପି ଉଲ୍ଲେଖ କରିଥିଲେ – "ମୋର କରୁଣ ହୃଦୟର ଶୁଷ୍କ ମରୁଭୂମି ଉପରେ ଯେଉଁ ଚିନ୍ତାର ଅଭିନୟ ଦେଖୁଅଛି, ତାହାର ଆଭାସରେ ଯାହା ପାଉଅଛି ତାହା ଅଶ୍ରୁର ସ୍ମୃତି ଉପରେ ଅଙ୍କନ କରି ମରମ ବ୍ୟଥାର ଭବ ଉଦ୍ଘାଟନ କରୁଅଛି ।"

ଏହି ନାରୀକବିଙ୍କ କବିତାରେ ସମାଜ ଚେତନା ପ୍ରତିଫଳିତ ହୋଇଛି । ସମାଲୋଚକ ଓ ସଂକଳନ କ୍ଷେତ୍ରବାସୀ ନାୟକଙ୍କ ମତରେ – "ମାନବଶିଶୁର କ୍ଷୁଧିତ ମନ ଯଦି ତାମସ ଉଲ୍ଲାସରେ ସବୁ କିଛି ଭୋଗ କରିବା ଲାଗି ପ୍ରବୃତ୍ତ ହୁଏ । ତେବେ ସମାଜରେ ଅବକ୍ଷୟର ମାତ୍ରା ବୃଦ୍ଧି ଘଟିବ ନିଶ୍ଚିତ । ଏହା ହେଉଛି ସମାଜ ସମ୍ପର୍କରେ ନାରୀ କବିଙ୍କର ଅନ୍ୟତମ ଅଙ୍ଗୀକାର । ସମାଜକୁ ତାମସ ଉଲ୍ଲାସର କ୍ରୀଡ଼ା ଭୂମି କରିବା ଅପେକ୍ଷା ସତ୍ୟ ଓ ସରାଗର ଲୀଳା ଭୂମିରେ ମାନବଗଣ ପରିଣତ କରନ୍ତୁ – ଏହା ନାରୀ କବି ଚିନ୍ତା କରିଛନ୍ତି । ବ୍ୟକ୍ତିର ନିବାସ, ସୌନ୍ଦର୍ଯ୍ୟ ଓ ପ୍ରୀତିବଦ୍ଧ ଆକର୍ଷଣର ଏକ କ୍ଷେତ୍ର ହୋଇପାରିଲେ ସଂସାର ବା ସମାଜ ମହନୀୟ ଗୌରବଲାଭ କରିବ ।" (ତତ୍ରୈବ: ପୃ.୪୭) ସେହିପରି କବିଙ୍କ କବିତାରେ ପ୍ରେମଚେତନା ମୂଳରେ ରହିଛି ସାର୍ବଜନୀନ ପ୍ରେମବୋଧ । ଦୈହିକ କ୍ରେବ ବଳୟକୁ ଅତିକ୍ରମ କରି ତାହା ମାନସ ଜଗତକୁ ଉତ୍ତୋଳିତ ହୋଇଛି । ଏଥିରେ ମାନବୀୟ ଆକର୍ଷଣ କ୍ରମେ କ୍ରମେ ରୂପାନ୍ତରିତ ହୋଇ ଈଶ୍ୱରୀୟ ଆହ୍ଲାଦରେ ପରିଣତ ହୋଇଛି । ସଂଯତ ଆଚରଣ ତଳେ ମାନବିକ ପ୍ରେମ ଲାଳସା ପରିବର୍ଦ୍ଧିତ ହୋଇ ପୂର୍ଣ୍ଣ ପ୍ରକାଶ ବିଭୁପ୍ରେମକୁ ସଂଚରିତ ହୋଇଯାଇଛି । ତେଣୁ ନାରୀ କବିଙ୍କ ରଚନାରେ ମାନବ ପ୍ରେମ ଓ ବିଭୁପ୍ରେମର ଚିରନ୍ତନ ଧାରା ପ୍ରବାହିତ ।

"ନୟନେ ନୟନ ମିଶି ଆଣୁ ସ୍ନେହ ସୁଖ
ହୃଦୟ ହୃଦୟ କଳି ଦୂର କରୁ ଦୁଃଖ ।
ମାନସ ମାନସେ ମିଶି ପରଶୁ ହରଷ
ଭାବରେଭାବନାକୁ ଖେଳୁ ନଥାଇ ବିରସ ।(ଆବାହନ)
ଆସ ହେ! ଆସ ଦେବତା ବସ ହୃଦ ମାଡି
ଦେଖିବି ଅମର ରୂପ ଲୋତକ ଅଜାଡ଼ି ।"

(ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ, ପୃ.୩୧୫)

ନାରୀକବିଙ୍କ କେତେକ କବିତାରେ ଭଗବତ ଚିନ୍ତନର ଈଶ୍ୱରୀୟ ଚେତନା ଆନ୍ଦୋଳିତ ହୋଇଥିବାର ଜଣାଯାଏ । ପ୍ରକୃତରେ ଐଶ୍ୱର୍ଯ୍ୟରେ ସେ ଈଶ୍ୱରଙ୍କୁ ପ୍ରତି କନ୍ଦରରେ ଅନୁଭବ କରିଛନ୍ତି । ବ୍ୟକ୍ତିଗତ ଜୀବନରେ ଦୁଃଖଦୁର୍ଦ୍ଦଶାର ସମ୍ମୁଖୀନ ହେଲେ ମଧ୍ୟ ଏକ ଅତିଚେତନା ମାନସର ଉଦ୍ବେଳନ ତାଙ୍କୁ ବାରମ୍ବାର ବଞ୍ଚିବାର ଓ ମାଡ଼ି ଚାଲିବାର ରାହା ଦେଖାଇଛି । ତେଣୁ କବିର ନୀରବ ହୃଦୟ ଗ୍ରହଣ କରିନେଇଛି ।

"ଆହେ ପ୍ରଭୁ ତୁମ୍ଭେ ମୋର ସକଳ ଉପାୟ
ସକଳ ଚିହ୍ନାଉଅଛି ହୋଇ ମୋ ସହାୟ ।
ଜାଣିଶୁଣି ପଥବଣା ହୁଏ କିସ ପାଇଁ
ଧରି କି ପାରିବି ବଳେ ବାୟୁ ପଛେ ଧାଇଁ ।
ଦିଅ ଧୈର୍ଯ୍ୟ ଦିଅ ଯଶ ହେବି ଅଗ୍ରସର
କର୍ତ୍ତବ୍ୟ ପାଳିବି ଭାବ ଚିହ୍ନି ଜଗତର ।"

(ମନଫେରଣ) (ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ: ପୃ.୨୭୯)

ବ୍ରହ୍ମପୁର (୧୯୦୯-୧୦୧୫)ରେ ଅବସ୍ଥାନ କାଳରେ କବି ଅନ୍ନପୂର୍ଣ୍ଣାଙ୍କର ସାହିତ୍ୟଚର୍ଯ୍ୟା ଓ ରଚନା ବ୍ୟାପକ ହୋଇଥିଲା । ସେ

ଫକୀରମୋହନ ସେନାପତି, ମଧୁସୂଦନ ରାଓ, ରାଧାନାଥ ରାୟ, ନୀଳମଣି ବିଦ୍ୟାରତ୍ନ ଓ ଚନ୍ଦ୍ରମୋହନ ମହାରଣା ପ୍ରଭୃତିଙ୍କ ସାହାଚର୍ଯ୍ୟ ତାଙ୍କୁ ଲେଖାଲେଖି କ୍ଷେତ୍ରରେ ଜାଗ୍ରତ କରିଥିଲା । ଏହିଠାରେ ରହି ସେ ପତ୍ରପତ୍ରିକା ସହିତ ସଂଶ୍ଳିଷ୍ଟ ହେବାର ସୁଯୋଗ ପାଇଥିଲେ ।

୧୯୧୫ରେ ପାରଳାଖେମୁଣ୍ଡି ରାଜାଙ୍କ ଡାକରାରେ ସପରିବାର ସେଠାରେ ଅବସ୍ଥାନ କରିଥିଲେ । ସେଠାରେ ନାରୀକବି ରାଣୀଙ୍କ ସାହିତ୍ୟ ଶିକ୍ଷୟିତ୍ରୀ ଭାବେ ନିଯୁକ୍ତ ପାଇଥିଲେ ଏବଂ ସ୍ୱାମୀ (ଶ୍ରୀରାମ ପଟ୍ଟନାୟକ) ଛାପାଖାନାରେ ଯୋଗ ଦେଇଥିଲେ । ପାରଳାଖେମୁଣ୍ଡିରେ ଯୁବରାଜଙ୍କ ଜନ୍ମ ଓ ଲାଳନ ପାଳନ ଭାର ମଧ ତାଙ୍କ ଉପରେ ପଡ଼ିଥିଲା । ମାତ୍ର ଅନ୍ନପୂର୍ଣ୍ଣାଙ୍କର ଦୁଇ ସନ୍ତାନ ମୃତ୍ୟୁ ପରି ରାଣୀଙ୍କର ପ୍ରଥମ ସନ୍ତାନ ପରେ ପରେ ଦୁଇଟି ସନ୍ତାନଙ୍କର ପ୍ରସବକ୍ଷଣି ମୃତ୍ୟୁ ହୋଇଥିଲା । ଏହାକୁ ନେଇ ନାରୀକବିଙ୍କୁ କୁତ୍ସାରଟନା କରାଯାଇଥିଲା । ଏପରି ଅବସ୍ଥାରେ ୧୯୧୯ରେ ସେ ବିଶାଖାପାଟଣା ଯାଇ ବିକ୍ରମଦେବ ବର୍ମାଙ୍କ ଆଶ୍ରୟ ନେଇଥିଲେ । ପାରଳା ଛାଡ଼ିବାର ଦୁଃଖଦ ଘଟଣା 'ବିଦାୟ' ଓ 'କୌଣସି ଏକ ରାଣୀଙ୍କ ପ୍ରତି' କବିତାରୁ ଦେଖିବାକୁ ମିଳେ । ବିଶାଖାପାଟଣାରେ ରହି ଲକ୍ଷ୍ମୀନାରାୟଣ ସାହୁଙ୍କ 'ସହକାର'ର ସଂପାଦିକା ଦାୟିତ୍ୱ ମଧ ସେ ବହନ କରିଥିଲେ । ଏହି ନାରୀକବିଙ୍କ ରଚନାରୁ କେତୋଟି ଜାତୀୟତାମୂଳକ ଉଦବୋଧନୀ କବିତା ରଚିତ ହୋଇଥିଲା, 'ମାତୃଭୂମି ପ୍ରତି', 'ଜାତୀୟ ସଂଗୀତ' (ଉତ୍କଳ ସମ୍ମିନଳୀର ଏକାଦଶ ଅଧିବେଶନ ଉପଲକ୍ଷେ ରଚିତ ହୋଇଥିଲା )

ସମାଲୋଚକ କ୍ଷେତ୍ରବାସୀ ନାୟକଙ୍କ ମତରେ – "ମନକୁ ଥିମ୍ କରି ଅନ୍ନପୂର୍ଣ୍ଣା ଯେତେ କବିତା ଲେଖିଛନ୍ତି ତହିଁରେ କବିଙ୍କର ଏକାନ୍ତ ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାରାଜି ପ୍ରକାଶ ପାଇଛି । ଏହାର ଚରିତ୍ର ପରୀକ୍ଷା କଲେ ଜଣାପଲେ ଯେ, ଏଗୁଡ଼ିକ ମଧ କବିମନର ସର୍ବମୋଟ ଦୁଇଟି ଭାବ-ବିଭବ (ମାନବୀୟ ଓ ଈଶ୍ୱରୀୟ)କୁ ପ୍ରକଟିତ କରିଛନ୍ତି । ଜାଗତିକ ବା ଆଧାତ୍ମିକ ସତ୍ୟର ଉପଲବ୍ଧି ପାଇଁ ଏଥିରେ ମନକୁ ଉଦବୋଧିତ କରିବାର ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ।" (କବିଙ୍କ ଦର୍ଶନ, ମୌଳିକ ମନନ, ପୃ.୫୫) କବି ପ୍ରାଣ ଜାଗତିକ ସଂସାରରେ ଦୋହଲିଯାଇନାହିଁ । ପ୍ରାଣକୁ ସେ ପାର୍ଥିବରୁ ଅପାର୍ଥିବ ଜଗତକୁ ସଂଚାଳନ କରିଛନ୍ତି, ତାହାହିଁ ହୋଇଛି ତୃପ୍ତିର ମାର୍ଗ । ଏହାବ୍ୟତୀତ ସ୍ୱପ୍ନ-ଶ୍ରୀବିଭାଗ:ଗଦ୍ୟ ରଚନା ପାଠ କଲେ ଏଥିରେ ଥିବା 'ଶ୍ରୀକୃଷ୍ଣ ମହାତ୍ମା ଓ ଅନ୍ନପୂର୍ଣ୍ଣା', 'ଅନ୍ନପୂର୍ଣ୍ଣା ଶ୍ରୀରାମ ଓ ଏକ ତେଜୀୟମାନ ପୁରୁଷ' ଗଦ୍ୟଗୁଡ଼ିକରୁ ନାରୀକବିଙ୍କ ବୈଷ୍ଣବୀୟ ଚିନ୍ତାଧାରା ସମ୍ପର୍କରେ ସହଜରେ ଅନୁମାନ କରାଯାଇପାରେ ।

ମୁଖ୍ୟତଃ ନାରୀକବିଙ୍କର ଅନେକ କବିତା ବ୍ୟକ୍ତିକୈନ୍ଦ୍ରିକ । ପ୍ରଥମେ ମାତ୍ର ତିନୋଟି କବିତା ସଂକଳନ ପ୍ରକାଶ ପାଇଥିଲା ବୋଲି ଆଲୋଚକ ବିନାୟକ ମିଶ୍ର ତାଙ୍କ ଆଧୁନିକ ଓଡ଼ିଆ ସହିତ୍ୟର ଇତିହାସରେ ଉଲ୍ଲେଖ କରିଛନ୍ତି ଏବଂ ସମସ୍ତ ତଥ୍ୟ ସେ ଲେଖକ ଶ୍ରୀ ରାଧାଚରଣ ପଣ୍ଡାଙ୍କ ଠାରୁ ପାଇଥିବାରୁ କଥା ସ୍ୱୀକାର କରିଛନ୍ତି । ସେଗୁଡ଼ିକ ମଧରେ ପଦ୍ୟମାଳା (୧ମ) ୧୯୦୪, ପଦ୍ୟମାଳା (୨ୟ) ୧୯୦୫ ଓ ପକ୍ଷିଘରା-୧୯୦୭ରେ ପ୍ରକାଶ ପାଇଥିଲା । ପରେ ନାରୀକବିଙ୍କ ରଚନାଗୁଡ଼ିକ ଆଲୋଚକ କ୍ଷେତ୍ରବାସୀ ନାୟକଙ୍କ ଦ୍ୱାରା ଏକତ୍ର କରାଯାଇଥିଲା ।

**ସହାୟକ ଗ୍ରନ୍ଥସୂଚୀ:**

୧. ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ, 'ସଂପାଦନା: କ୍ଷେତ୍ରବାସୀ ନାୟକ', ୧୯୭୮

୨. ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ, ବିନାୟକ ମିଶ୍ର, ୧୯୬୬ , ଶରଣକୁଳ